# ବାଳ-ପ୍ରଭାତ

ଶ୍ରୀ ବାଞ୍ଛାନିଧି ଦାଶ

# ବାଳ-ପ୍ରଭାତୀ

'ବାଳ-ପ୍ରଭାତୀ' ମୁଁ ବାଳ ପ୍ରାଣେ ଦେବ
ନବ ଜାଗରଣ ସ୍ୱର,
ଦେଶ ଦଶ କାମେ ଜୀବନ ସରସ
କରାଇବ ନିରନ୍ତର ।

ବାଞ୍ଛାନିଧି—

ପ୍ରକାଶକ :—
ଶ୍ରୀ ବାଞ୍ଛାନିଧି ଦାଶ
ଦେବବାଳା ସାହିତ୍ୟ-ମନ୍ଦିର
କଟକ

ପ୍ରଥମ ସଂସ୍କରଣ—୧୦୦୦
୧୯୪୭

ମୂଲ୍ୟ ଛ ଅଣା

ମୁଦ୍ରାକର—ଶ୍ରୀ ବନମାଳୀ ମିଶ୍ର
ନବଭାରତ ପ୍ରେସ,
କଟକ

# ଉତ୍ସର୍ଗପତ୍ର



ଯେଉଁ ପ୍ୟାରୀମୋହନ ବିଦ୍ୟାଳୟର ମାନନୀୟ ଶିକ୍ଷକବୃନ୍ଦ
ଓ ସ୍ନେହ ଛାତ୍ରମାନଙ୍କ ସୌହାର୍ଦ୍ଦ୍ୟରେ ମୋର କବିତା-
ଗୁଚ୍ଛକ ପୁସ୍ତକ ଆକାର ଧାରଣ କରି ଜାତିର
ସେବା-ପଥରେ ଅଗ୍ରସର ହେବାକୁ
ଯାଉଛି, ମୋର ହୃଦୟର ଗଭୀର
କୃତଜ୍ଞତା ସ୍ୱରୂପ ସେମାନଙ୍କ
ତରଫରୁ ପୂଜ୍ୟ ପ୍ରଧାନ ଶିକ୍ଷକ
**ଶ୍ରୀଯୁକ୍ତ ବସନ୍ତକୁମାର ଦାସଙ୍କ**
କରକମଳରେ
ଅର୍ପଣ କଲି

**ଲେଖକ**



## —ମନକଥା—

ଉତ୍କଳ ମୌଳିକ ଜାତୀୟ ଶିକ୍ଷାନୁଷ୍ଠାନରେ କର୍ମୀରୂପେ ଥାଇ ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କର ମନୋଭାବ ଲକ୍ଷ୍ୟ କରି ଯେଉଁ କବିତା ଓ ସଙ୍ଗୀତ ଗୁଡ଼ିକ ଲେଖି ସେମାନଙ୍କ ସରଳ ପ୍ରାଣକୁ ନବୀନ ଶିକ୍ଷା ପଥରେ ଆକର୍ଷଣ କରିବାକୁ କିଞ୍ଚିତ କ୍ଷମ ହୋଇ ପାରନ୍ତି—ସେହି-ଗୁଚ୍ଛକ ମଧ୍ୟରୁ ଏ କେତୋଟି ମାତ୍ର ସଂଗ୍ରହ । କେବଳ କର୍କଶ ଗଦ୍ୟ-ମୟ ପାଠ ଦେଇ ପିଲାଙ୍କର ଯେ ଶିକ୍ଷା ଲାଭ କରାଯାଇ ପାରେନା କବିତା ମଧ୍ୟ ଦେଇ ତାହା ସୁଗମ ବୋଲି ମୋର ଅନୁଭୂତ ।

ଆଜି କାଲି ମୌଳିକ ଶିକ୍ଷାର କ୍ରମିକ ଆଦର ଓ ପ୍ରସାର ଦେଖି ଓ ମୋର ସହକର୍ମୀ ଶିକ୍ଷକମାନଙ୍କ ଅନୁରୋଧରେ ଏ କେତୋଟି ପ୍ରକାଶ କରିବାକୁ ଯାଉଛି । ଏହି ସରଳ କବିତା ପୁସ୍ତକ ଖଣ୍ଡି ଯେ କେବଳ ମୌଳିକ ଶିକ୍ଷାନୁଷ୍ଠାନର କାର୍ଯ୍ୟରେ ଲାଗିବ ବୋଲି ମୋର ଇଚ୍ଛା ତା ନୁହେଁ—ପ୍ରାଥମିକ ବିଦ୍ୟାଳୟରେ ବା ସମୁଦାୟ ଦେଶର ଗାଁ ଗହଳର ପିଲାମାନଙ୍କ ପ୍ରାଣରେ ଯଦି ନବ ଜାଗରଣର ଅବ-ତାରଣା କରେ, ତେବେ ମୋର ଶ୍ରମ ସାର୍ଥକ ହେବ । ଇତି ।

ଲେଖକ

ଉତ୍କଳର ରସିପ୍ରବୀଣ ଅଗ୍ରଗଣ୍ୟ ହରିହର ଦାସଙ୍କ

## ଆଶୀର୍ବାଦ-ବାଣୀ

ବାଞ୍ଛାନିଧି,

ଉଚ୍ଛ୍ୱାସ-ଛନ୍ଦ୍ରେ ଲଳିତ, ସୁବୋଧ୍ୟ, ସହଜ, ସରଳ ଓ ଓଜସ୍ୱିନୀ ଭାଷାରେ ତୁମେ ଯେଉଁ ବାଣୀ-ଦେବୀଙ୍କ ଆରାଧନା ଆରମ୍ଭ କରିଛ, ସେହି ବାଣୀ-ବରଦାଙ୍କ ଶୁଭଦୃଷ୍ଟି ଓ ଆଶୀର୍ବାଦରେ ତୁମର ଲେଖାଗୁଡ଼ିକ ଜନସାଧାରଣରେ ଆଦୃତ ହେଉ ଏବଂ ଏ ଜାତି ଓ ଦେଶକୁ ଉଦ୍‌ବୁଦ୍ଧ କରୁ – ଏହା ହିଁ ଏକାନ୍ତ କାମନା ।

ହରିହର ଦାସ
ସତ୍ୟବାଦୀ, ତା ୮-୩-୪୬

---

ଉତ୍କଳ ମୌଳିକ ଜାତୀୟ ଶିକ୍ଷାଅନୁଷ୍ଠାନର ପରିଚାଳକ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ମହାରଣା ଲେଖିଛନ୍ତି—

"ଶ୍ରଦ୍ଧେୟ ତରୁଣ କବି ଶ୍ରୀବାଞ୍ଛାନିଧି ବାବୁଙ୍କର ପାଣ୍ଡୁଲିପି-ଗୁଡ଼ିକ ପଢ଼ିବାର ଓ ଆଲୋଚନା କରିବାର ସୁଯୋଗ ଆମ୍ଭମାନଙ୍କ ମୌଳିକ ଶିକ୍ଷାକେନ୍ଦ୍ରରେ ଘଟିଥିଲା । ତାଙ୍କର କବିତା ଓ ସଂଗୀତରେ ଆମମାନଙ୍କର ସାନ ସାନ ବାଳକବାଳିକା ଏତେ ଆନନ୍ଦ ପାଇଛନ୍ତି ଯେ ଅନେକ ସମୟରେ ସ୍ୱେଚ୍ଛାରେ ସେମାନେ ଆବୃତ୍ତି କରୁଥାନ୍ତି । ଲେଖାଗୁଡ଼ିକ ଏତେ ସରଳ, ସ୍ୱଭାବବର୍ଦ୍ଧକ, ଉଚ୍ଚଭାବନାଯୁକ୍ତ ଓ ପ୍ରସାଦଗୁଣ ବିଶିଷ୍ଟ ଯେ ଓଡ଼ିଆ ବାଳ-ସାହିତ୍ୟରେ ସେ ଗୁଡ଼ିକ ବିଶିଷ୍ଟ ସ୍ଥାନ ପାଇବ । ଏ ଗୁଡ଼ିକ ସର୍ବସାଧାରଣରେ ଆଦୃତ ହେବାର ଦେଖିଲେ ମୁଁ ଆନନ୍ଦିତ ହେବି ଓ ଲେଖକ ଉତ୍ସାହିତ ହୋଇ ଭବିଷ୍ୟତ ବାଣୀଅର୍ଚ୍ଚନାର ସୁଯୋଗ ପାଇବେ ।"

ଶରତ୍‌ଚନ୍ଦ୍ର ମହାରଣା
ମୌଳିକ ଶିକ୍ଷା କେନ୍ଦ୍ର, ୨୩।୨।୪୬

---

ଉତ୍କଳର ସର୍ବଶ୍ରେଷ୍ଠ ସାହିତ୍ୟିକ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଭିମତ—

ଶ୍ରୀମାନ୍ ବାଞ୍ଛାନିଧି ଦାସ ଜଣେ ଉଦୀୟମାନ କବି । ତାଙ୍କ କବିତା କେବଳ ସୁପାଠ୍ୟ ନୁହେଁ, ସେଥିରେ ବିଷୟଠାରୁ ଲେଖନଭଙ୍ଗୀ ପର୍ଯ୍ୟନ୍ତ ସବୁଥିରେ ନୂତନତା ଅଛି । ଏଂବ ଜାତୀୟ ଜୀବନରେ ଗାନ୍ଧିବାଦ ବୋଲି ନୂତନ ବିପ୍ଳବଟିଏ ଘଟିଛି; ସାହିତ୍ୟ ବିଶେଷତଃ କବିତାରେ ତା ପ୍ରକାଶ ପାଇବା କମ୍ ଦେଖାଯାଏ । ସରସ ସୁନ୍ଦର ଛନ୍ଦରେ ବାଞ୍ଛାନିଧିଙ୍କ କବିତାରେ ତାର ପ୍ରକାଶ ଦେଖିଲେ ସୁଖ ଲାଗେ । ବାଞ୍ଛାନିଧି ଏଥିରେ କ୍ରମିକ ବିକାଶରେ ହେଉନ୍ତୁ ।

ନବଭାରତ ପ୍ରେସ
କଟକ

ନୀଳକଣ୍ଠ ଦାସ
୨୪-୪-୪୭

---

ସମାଜର ସମ୍ପାଦକ ଓ ଲୋକ ସେବକ ସମାଜର ସଭ୍ୟ
ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଅଭିମତ :—

ତରୁଣ କବି ଶ୍ରଦ୍ଧେୟ ଶ୍ରୀମାନ୍ ବାଞ୍ଛାନିଧିଙ୍କ ରଚିତ 'ବାଳ-ପ୍ରଭାତୀ'ର କବିତାଗୁଡ଼ିକ ପଢ଼ି ମନେ ହେଲା, ପୁଣି ସେହି ଗାଆଁ ଗହଳକୁ ଫେରିଯାନ୍ତି—ପୁଣି ପିଲା ହୋଇ ଏହି ସଙ୍ଗୀତଗୁଡ଼ିକ ଗାଇ ସ୍ୱାଧୀନ ରାଜ୍ୟର ସେବକ-ଶିକ୍ଷାର୍ଥୀରୂପେ ନୂଆ କରି ଜୀବନ ଆରମ୍ଭ କରନ୍ତି । ମୋର ମନେ ହୁଏ—ଏ କବିତାରେ ଗ୍ରାମ୍ୟ ଜୀବନର ସରଳତା, ସ୍ୱାଭାବିକତା ଓ ମୌଳିକତା ଯେପରି ଫୁଟିଛି, ପ୍ରାକୃତିକ ସରସ-ମଞ୍ଜୁଳ ବେଷ୍ଟନୀର ଗୃହଚ୍ଛବି ସଙ୍ଗେ ସଙ୍ଗେ ସ୍ୱାଧୀନ ଅଧିବାସୀର ବାଲ୍ୟଜୀବନର ଅଭିବ୍ୟକ୍ତି ସେହିପରି ରୂପ ପାଇଛି । କବି ବନ୍ଧୁଙ୍କୁ ମୁଁ ମୋର ସ୍ନେହାଶୀର୍ବାଦ ଜଣାଉଛି । ଏ ଦେଶର ଶିଶୁ ଏହି ଆଦର୍ଶରେ ଗଠିତ ହେଉ—ଏହି ଗୌରବରେ ଗର୍ବିତ ହେଉ ।

ରାଧାନାଥ ରଥ
ତା ୯-୪-୪୭

# ବାଲ-ପ୍ରଭାତୀ

## ପ୍ରାର୍ଥନା

ଭଲ ବାଟ ମୋତେ ଦେଖାଅ ତମେ ଜହ୍ନାଲେ ଅଉ
ଦାଉ ଧକ୍କା ଯେତେ ଆସିବ ସବୁ ଯିବ ଏଡ଼ାଇ ।

ସତ ମିଠା ବୋଲି ଦିଅ ହେ ସଦା ତୁଣ୍ଡରେ ମୋର
ଦେଶ ଦୁନିଆର କାମେ ନ ମଣେ ଆପଣା ପର ।

ଦୁଃଖୀ ରଙ୍କୀ ଶୋଷୀ ସଭାଙ୍କେ ଝରୁ ଆଖିରୁ ପାଣି
ତାଙ୍କ ସେବା ଲାଗି ସାହସ ବଳ ଦିଅ ହେ ଆଣି ।

ସମ୍ପଦେ ନ ହୁଏ ବିଭୋର ବିପଦରେ ଅଧୀର
ସତ ଲାଗି ଛାତି ପାତେ ମୁଁ କଟୁ ପଛେ ମୋ ଶିର ।

ଟଙ୍କା, ସୁନା, ପଉରୁଷକୁ ମନ ନ ବଳୁ ତଳେ
ନତ କର ସଦା ମୋ ମଥା ତମ ଚରଣ ତଳେ ।



# ବାଳ-ମିନତି

ସକାଳ ହୋଇଲେ       ତୁମ୍ଭେ ହସାଅ
ଲାଲିଆ ସୁରୁଯ ଗୋଟି,
ସଞ୍ଜ ହେଲେ ନୀଳ-       ଅକାଶରେ ଟିକି
ତାରା ଗୁଡ଼ିଏ ମିଟିମିଟି ।
ପୁନେଇ ରାତିରେ       ରୁପା ଥାଳି ପରି
ହସାଅ ପୁନେଇଁ ଜହ୍ନ,
ଲକ୍ଷ ଲକ୍ଷ ଦେଶ       ତାହାର ଆଲୁଏ
ଗାଆଁ, ନଈ, ଶୈଳ, ବଣ ।
ଫୁଲବଗିଚାରେ       କି ସୁନ୍ଦର ହସ
ହସେ ଟିକି ଫୁଲ କଢ଼ି,
ମେଘ ତଳେ ତଳେ       ବିଜୁଳି ହସାଅ
ତାଳ ଦିଏ ଘଡ଼ଘଡ଼ି ।
କିଏ ତମ ବିନା       ଗଢ଼ିବ ହେ ପ୍ରଭୁ !
ହସର ସଂସାର ଗୋଟି,
ତମେ ଯଦି ଏକା       ହସ ଭଗବାନ
ହସୁଥାନ୍ତି କୋଟି କୋଟି ।
ମୋର ଟିକି ମୁହେଁ —       ହସ ଫୁଟାଇଛ
ବୁକୁତଳେ ମୋର ଥାଇ,
ଯେଉଁ କାମ କରେଁ       ଅଗ ଯିବ ତମ-
ନାମେ ଜୟଗୀତ ଗାଇ ।

# ପ୍ରଭାତ ବନ୍ଦନା

ଗତ ଅନ୍ଧାର ଏବେ ତ ଗଲାଚାଲି,
ଏବେ ପୂରୁବ-ଆକାଶ ହସେ ନାଲି ।
ନୂଆ ପ୍ରଭାତେ ପ୍ରଭୁ ହେ ମୋ ମିନତି,
ଦିଅ ନୂଆ ବଳ, ତେଜ ଧୀର ମତି ।
ତମ କଲ୍ୟାଣେ ବହିବ ଧୀର ବାଅ
ଲୁଅ ପଡ଼ିଲେ ଡାକବ ବାପ ବାପ ।
ନୂଆ ତେଜେ ଜାଗେ ନର ପଶୁ ପକ୍ଷୀ,
ଦିଅ ନୂଆ ତେଜ ବଳ ଧୀର ମତି ।
ରଙ୍ଗ ରଙ୍ଗିଆ ସୂରୁଯ ଆଲୋକରେ,
ହସି ଉଠଇ ସଂସାର ଆନନ୍ଦରେ !
ତମ କଲ୍ୟାଣେ ତାର ତେଜ, ଶକତି,
ଦିଅ ନୂଆ ତେଜ, ବଳ, ଧୀର ମତି ।
ସୁନ୍ଦର ଭୂମିର ମଙ୍ଗଳ ନାମଟି
ଗତ ଯାଉ ପ୍ରଭୋ ! ଏ ସାରା ଦିନଟି
ଦେଶ ଦୁନିଆର ହିତେ ମୋ ମିନତି,
ଦିଅ ନୂଆ ତେଜ ବଳ ଧୀର ମତି ।



# ସାନ୍ଧ୍ୟ-ଗୀତ

ମାଆ କୋଳକୁ ଗଲେଣି ସୂରୁଯ,
ପଶ୍ଚିମରେ କେତେ ରଙ୍ଗ ମୁରୁଜ !
ବହି ଜ୍ୟୋଉଛି ସାରା ଆକାଶଟା,
ଫୁଲ୍ ଫୁଲ୍ ବହଳ ଦଗାସଟା ।
ଦଳ ଦଳ ଉଡ଼ିଯାନ୍ତି ଚଢେଇ,
କେତେ ଦୂର ପାହାଡ଼ ବଣ ଡେଇଁ ।
ମନ ମଉଜେ କେତେ ଗୀତ ଗାଇ,
ନିଜ ବସାକୁ ଫେରୁଛନ୍ତି ଧାଇଁ ।
ମିଠି ମିଠି ଜୁହିଁଲଣି ତାରାଟି,
ଏବେ ଅନ୍ଧାର ଆସିଲା ପରାଟି ।
ଖେଳ ଭଉଣୀ ଏବେ ଆସ ମୋର
ବେଳ ହେଲାଣି ନ କର ଉଛୁର ।
ମିଳି ପ୍ରଭୁଙ୍କୁ ଜଣାଣ କରିବା
ସବେଁ ଗୋଟିଏ କଣ୍ଠରେ କହିବା :—
"ପ୍ରଭୁ ! ଦିବସ କାମେ ଶେଷେ ଅମ୍ଭେ,
ସବେଁ ଜଣାଣ କରୁ ତବ ନାମେ ।
ଅଜି ଦିନରେ ଯେ କାମ କରିଛୁ,
ଭଲ ମନ୍ଦ ଯାହା ତହିଁ ରହିଛି ।
ଭଲ କାମେ ମନ ଧାଉଁ କାଲିକ,
ଦୁଃଖ ଅଛୁ— ମନ୍ଦ କଲୁ କାହିଁକି ?
କାଲି ପାଇଁ ମନରେ ଦିଅ ବଳ,
ପ୍ରଭୁ ! ସଞ୍ଜରେ ଭିକ୍ଷା ପଦଟିଳ ।"

# ପଟୁଆର ଗୀତ

(୧)

ଆମେହିଁ ଗଢ଼ିବୁ ଦେଶ,
ଆମେ ଏ ଦେଶର ଅଗ୍ରୁଆ ସୈନ୍ୟ, ଆମେହିଁ ଗଢ଼ିବୁ ଦେଶ;
ଅମର ହାତେ ଫେରାଇ ଆଣିବୁ ପୁନାର ଭାରତବର୍ଷ ।
ଆମେହିଁ ଗଢ଼ିବୁ ଦେଶ ।

(୨)

ଜନ୍ମଭୂମିର ସେବାଧର୍ମ, କର୍ମ ଆମର ଶିକ୍ଷା;
ରକ୍ତେ ରକ୍ତେ ଜନ୍ମଭୂମିର ମୁକ୍ତମନ୍ତ୍ର ଲେଖା ।
କର୍ମ ଆମର ଶିକ୍ଷା ।

(୩)

ସବି ଶେଷେ, ଯାତ୍ରୀ ଆମେ,
ତୋଳିବୁ ମୁକ୍ତିସୂର୍ଯ୍ୟ,
କାତର ମୁଖୁଁ ଅଶ୍ରୁ ପୋଛିବୁ ଫୁଟାଇ ନବୀନ ହର୍ଷ ।
ଆମେହିଁ ଗଢ଼ିବୁ ଦେଶ ।



# ପ୍ରଭାତଫେରୀ

( ୧ )

ଦେଶେ ଆମେ ନୂଆ ପଲ୍ଟଣ ଦଳ,
ହାତେ ନାହିଁ ତୋପ ବନ୍ଧୁକ ବଳ,
ସୂତା ହାତେ ଯେବେ ଆମର ବଳ,
ତେବେ ଆଉ କିଆଁ ଡର—
ଚାଲ ରେ ଚାଲ ରେ ଚାଲ……

( ୨ )

ଆମ ସରକାର ଆମେ ଗଢ଼ିବା,
ଆମ ଦେଶ ଆମେ ନିଜେ ଶାସିବା,
ଦରିଆ ସେପାର ମାଲିକଦଳ,
ନାହିଁ ଆମ ଦରକାର୍ ।
ଚାଲ ରେ ଚାଲରେ ଚାଲ……

( ୩ )

ହାସଲ କରିବା ଆମର ଦାବୀ,
ଫେରାଇ ଆଣିବା ଆମର ସ୍ୱତ୍ୱ,
ସେଥି ଲାଗି ପଛେ ମରଣ ଆସୁ,
ହସି ହେବା ଆଗଭର ।
ଚାଲ୍‌ରେ ଚାଲରେ ଚାଲ୍··



# ଶୋଭାଯାତ୍ରା ସଙ୍ଗୀତ

ଆମେ ଭାରତଭୂଇଁ ଝିଅ,
ଏଇ ଦେଶକୁ ଗଢ଼ିବୁ ଆମେ ଆମର ହାତେ ନୂଆ ।
ଯେଉଁ ଦେଶର ପଦଧୂଳି ଦରିଆ ଧୁଏ ଧୋଇ
ହିମାଳୟ ମୁକୁଟ ଯାର—ଗଙ୍ଗା ସିନ୍ଧୁ ନଈ । ୧ ।
ଯେଉଁ ଦେଶର ଭୂଇଁ ଦିଏ ସୁନାର ଫୁଲ ଫଳ
କେତେ ଶୀତଳ ବାଆ ବହେ—କେତେ ମିଠା ଜଳ ।
ଆମେ ଭାରତଭୂଇଁ ଝିଅ,
ଏଇ ଦେଶକୁ ଗଢ଼ିବୁ ଆମେ ଆମର ହାତେ ନୂଆ । ୨ ।
ଯେଉଁ ଦେଶର ଚମ୍ପାପୁଅ ଲଙ୍ଗଳ ଗୋଟା ଠରେ,
ଦୁନିଆଟାକୁ ବାଣ୍ଟଇ ପଢ଼ି ମାଷ୍ଟିର ବୁଦ୍ଧି ଚିର ।
ଆମେ ଭାରତଭୂଇଁ ଝିଅ........
ପଥରେ କରେ ଛୁଇଁର କାମ ଯେ ଦେଶ କାରିଗର,
ତାଜମହଲ, କୋଣାରକ, ଦୁନିଆ ଚମତ୍କାର ।
ଆମେ ଭାରତଭୂଇଁ ଝିଅ.........
ଯେଉଁ ଦେଶର ପୋଥି ପୁରାଣେ ଭରା ବୀର କଥା
ଯେ ଦେଶ ପୁରୁ ନୁଆଁଏ ନାହିଁ ଶତ୍ରୁ ପଦେ ମଥା ।
ଆମେ ଭାରତଭୂଇଁ ଝିଅ...
ଯେ ଦେଶ ଝିଅ ଦୁର୍ଗାବତୀ ଶତ୍ରୁ ସାଥେ ଯୁଝେ,
ଗାନ୍ଧି ବୁଢ଼ା ପୁଅ ଯାର ଦୁନିଆ ଗୋଟା ବୁଝେ ।
ଆମେ ଭାରତଭୂଇଁ ଝିଅ........
ସୁନାରେ ମୋର ଭାରତ ଗଢ଼ା କଷିବ ତାର ଠେକ
ନାହିଁ ଟଳେ ଆମର ଉର ପଛକେ ଯାଉ ବେକ ।

# ଭଲ ପିଲା

ଆମେ ନୂଆ ଯୁଗଟାଏ ଗଢ଼ିବୁଁ

ନୂଆ ପାଠପଢ଼ି ତାହାର ଆଲୁଏ ଦୁନିଆ ଆଲୁଅ କରିବୁଁ ।
ଅଧା ପେଟରେ ଚାଷୀ ମୂଲିଆର ଦୁଃଖ ଆମେ ପଣ କରିବୁଁ,
ବିଦେଶୀ ଶାସନ ଗୋଲାମୀ ପାଠକୁ ଆମ ରାଇଜରୁ ତଡ଼ିବୁଁ ।
ଆମେ ନୂଆ ଯୁଗଟାଏ ଗଢ଼ିବୁ,
ନୂଆ ପାଠ ପଢ଼ି ତାହାର ଆଲୁଏ ଦୁନିଆଁ ଆଲୁଅ କରିବୁ ।

( ୨ )

ଆମର ଲଙ୍ଗଳେ ଆମ ମାଟି ତାଡ଼ ଆମ ଭାତ ଲୁଗା କରିବୁଁ,
ଆମର ପୂରୁବ ପୁରୁଷଙ୍କ ବାଟ ଧରି ଆମେ ବାଟ ଚାଲିବୁଁ,
ଯେଉଁ ପାଠ କରେ ନିକମା ଏ ଦେଶ ଦରିଆ ସେପାରି କରିବୁଁ,
ଗାନ୍ଧି ବୁଢ଼ା ଯେଉଁ ବାଟ ଦେଖାଇଛନ୍ତି ସେହି ବାଟେ ପାଠ ପଢ଼ିବୁଁ ।
ଆମେ ନୂଆ ଯୁଗଟାଏ ଗଢ଼ିବୁ,
ନୂଆ ପାଠ ପଢ଼ି ତାହାର ଆଲୁଏ ଦୁନିଆଁ ଆଲୁଅ କରିବୁ ।

( ୩ )

ନାହିଁ ଆମ ଭେଦ ହିନ୍ଦୁ-ପଠାଣ ସରବେ ମିଳିଣ ଚଳିବୁଁ ।
ଏକ ଦେଶ ମାଆ ପୁଅ ଝିଅ ଆମେ କାହିଁ ପାଇଁ କଳି କରିବୁଁ,
ସବୁ ଦେଶ ସବୁ ଜାତିର ଭାଇଟରେ ହାତ ଦେଇ ବାଟ ଚାଲିବୁଁ,
ନୋହୁଁ ଆମେ ହୀନ ଆମ ବଡ଼ପଣ ଜଗତେ ଜାହିର କରିବୁଁ ।
ଆମେ ନୂଆ ଯୁଗଟାଏ ଗଢ଼ିବୁ,
ନୂଆ ପାଠ ପଢ଼ି ତାହାର ଆଲୁଏ ଦୁନିଆଁ ଆଲୁଅ କରିବୁ ।

ଆମଦେଶ ପୁଅ ଧରମାର ପଥ   ଅମାପ ସାଧନ କରିବୁଁ,
ଦରିଆରେ ସିଏ ଦେଉଳ ତୋଳିଲା  ଯେବେ କିମ୍ପାଁ ହୀନ ହୋଇବୁଁ ?
ସବୁ ବାଧା ପରେ ଦୁନିଆଁ ଆଗରେ   ନୂଆ କୋଣାର୍କ ତୋଳିବୁଁ,
ଆମ ପଛେ ପରା ପ୍ରଭୁ ଭଗବାନ   ତାଙ୍କ ଯଶଗୁଣ ଗାଇବୁଁ ।



## ମୋ ଜନମ ଭୂଇଁ

( ୧ )

ସ୍ୱର୍ଗରାଣୀ ମୋର ଜନମଭୂଇଁ,
ପାରାବାର ଲୋଟେ ଚରଣ ଛୁଇଁ,
ବରଣ ବରଣ ଲହଡ଼ି-ମାଳାରେ
ଯଶଗାଥା ତାର ନିରତେ ଗାଇ ।

( ୨ )

ଶିରେ ହିମାଳୟ ମୁକୁଟ ତାର,
ଗ୍ରୀବା ଜକଜକ ଧଳା ତୁଷାର,
ସିନ୍ଧୁ-ମନ୍ଦାକିନୀ-କାବେରୀ-ନର୍ମଦା-
ମହାନଦୀ ତାର ଗଳାରେ ହାର ।

( ୩ )

ବିନ୍ଧ୍ୟ ପର୍ବତ ତା କଟିମେଖଳା,
ଛୁଣ୍ଣ ଝୁଣ୍ଣ ଝୁଣ୍ଣ ପ୍ରପାତ-ମାଳା,
ନାନାରଙ୍ଗ ଫୁଲ ପତର ଶାଢ଼ୀରେ
ହସେ ମୋ ମାଆ ସୁଜଳା ସୁଫଳା

( ୪ )

( ୪ )

ଜଗତରେ କାହିଁ ମୋ ଦେଶ ସରି
ସୁନ୍ଦର ମନୋହର ରହିଛି ଆଉ ?
ଧର୍ମ-କର୍ମ-ଯଶ-କୀରତି-ବିଭବେ
ନାହିଁ କେଉଁ ଦେଶ ଧିବରେ ବଳି ।

( ୫ )

କୋଣାର୍କ ତାଜମହଲ ପରି
ନାହିଁ ନ ମିଳିବ ଦୁନିଆଁ ଭରି ।
କଳା କଉଶଳେ ଅଛି କେ ଜଗତେ
ମୋ ଭରତଠାରୁ ଯିଏରେ ବଳି ?

( ୬ )

ଭକ୍ତ, ଶବଦର, ବୀର ଜନନୀ
ସକଳ ଧର୍ମର ପବିତ୍ର ଖଣି
ବିଶ୍ୱଜନତାର ପଥପ୍ରଦର୍ଶକ
ମୋ ଜନମଭୂଇଁ ସନ୍ତାନ-ମଣି ।

( ୭ )

ବୀର ଜନନୀର ସନ୍ତାନ ମୁହିଁ
ଜଗତେ ମୋ ଭୀତି କାହାକୁ ନାହିଁ
ଉଡ଼ାଇବ ତାର ପବିତ୍ର ନିଶାଣ
ହିମାଚଳଶିରେ ଦରପେ ଡେଇଁ ।



# ଝଣ୍ଡା—ବନ୍ଦନା

ଏ ମାଟି ଅମ ଜନମଭୂଇଁ  ଏଇ ପତାକା ତାର,
ଏଇ ପତାକା ଦଅଁ ଦେବତା  ଅଗ ତା ନମସ୍କାର ।
ଏହାର ତଳେ ଦୋଳବୁଁ ଛୁଣ୍ଡ ନୂଲ୍କ ଯାଇ ଯେତେ,
ଗୋଟିଏ ମାଆ ପିଲାରେ ଅମେ ହେଉଁ ପଛକେ ଯେତେ ।
ଭୁଲିବୁଁ ଅମେ ବ୍ରାହ୍ମଣ, ପାଣ ପଠାଣ ଅହଙ୍କାର,
ଏଇ-ପତାକା ଦଅଁ ଦେବତା ଅଗ ତାଁ' ନମସ୍କାର ।
ଏଇ ଅମର ମନରେ ଦିଏ ନୂଆ ସାହସ ବଳ,
ନୂଆ ସ୍ବପ୍ନ ଅସିବ ଉଇଁ ଏଇ ପତାକା ତଳ ।
ଏହାର ଲାଗି ଛୁଟେ ଏ ଜାତି—ତାଜାର ଲହୁ-ଧାର,
ଏ ମାଟି ଅମ ଜନମ ଭୂଇଁ ଏଇ ପତାକା ତାର ।
ଅସିବ ଯେତେ ବାଆ ବତାସ ଏଇ ପତାକା ପାଇଁ,
ମରିବୁଁ ପଛେ ଡରିବୁ ନାହିଁ ଏଇ ପତାକା ରହୁଁ ।
ତଳେ କେଉଁଠାଇ ନ ଦେବୁଁ ଅମେ ରଖିବୁଁ ମାନ ତାର,
ଏଇ ପତାକା ଦଅଁ ଦେବତା ଅଗ ତାଁ' ନମସ୍କାର ।



# ନୂଆ ଯୁଗର ଛୁଆ

ଏହି ଦେଶ ଛୁଆ ଆମେ ନୂଆ ପାଠପଢ଼ି
ନୂଆ କଥା, ନୂଆ ଚଳ ଶିଖୁ ଆମେ ଗଢ଼ି ।
ଭଙ୍ଗା ଘର ଭାଠକୁଠା ଅଛୁ ଯାହା ଦଢ଼
ତାକୁ ନେଇ ତୋଳିଶିବୁ ଆମେ ନୂଆ ଘର ।

ଆମ ତାଂଗ୍ରୁ ମୂଳଦୁଆ ନ ଥିବଟି ଯେବେ
ରେବ୍ର ଚଳ ବୋଲି ଚାଲିକେ ଘୃଣା ଦେବେ ତେବେ ।
ସେହି ଦେଶ ଛୁଆ ଆମେ ଯାର ବାପ ଅଜା
ବୋଇତକୁ କରି ମାଲ ମସଲାରେ ସଜା
ଯାଉଥିଲେ ଦରିଆରେ ଦୂର ବାଇଜଙ୍କୁ
ଆମେ କିଅଁ ହୀନ ବୋଲି ମଣିବୁ ନିଜକୁ ?

ଆମେ କିଅଁ ନ ଗଢ଼ିବୁଁ ଜଳସ୍ଥଳ ଯାନ,
ଆକାଶରେ ଉଡ଼ିବାକୁ ନୂଆ ବ୍ୟୋମଯାନ,
ରାମାୟଣେ ପଢ଼ିଅଛୁଁ ରାମଚନ୍ଦ୍ର ବୀର
ପୁଷ୍ପକ ବିମାନେ ଗଲେ ଜିଣି ଦଶଶିର ।

ଆମ ଦେଶେ ଅରଜୁନ ଭୀମ ମହାବଳୀ
ଆମେ କିଅଁ ନ ହୋଇବୁଁ ବୀର ତାଙ୍କ ଭଳି ?
ସତ ଲଢ଼ି ପାରୁଥିଲେ ସେ ବୀରେ ତ ସ୍ଥିତ
ହୀନ କି ହୋଇବୁଁ ଆମେ ତାଙ୍କ ପୁଅନାତି ?

ଆମ ବ୍ୟାସ ବାଲ୍ମିକୀ କାଳିଦାସ ଭବ
ଲେଖିଗଲେ କେତେ ପୋଥି ହୋଇ ମହାକବି ।
ଆମେ କିଆଁ ନ ଲେଖିବୁ ? ତାଙ୍କ ଲହୁଧାର—
ବହୁଅଛି ପରା ଆମ ଶିରା ପ୍ରଶିରାର ?
କାରିଗରପଣେ କହ କିଏ ଥିବ ବଳି,
ବାରବର୍ଷ ପିଲା ଆମ ଧର୍ମପଦ ଭଳି
ଗଢ଼ିବ କେ କୋଣାରକ କହ କେଉଁ ଜାତି ?
ତାଜମହଲ ପରି କାର୍ଯ୍ୟ ଯାହା ଦେଖି ଛାତି !

ଆମ ଦେଶ ପ୍ରହ୍ଲାଦ, ଧ୍ରୁବ, ବୁଦ୍ଧ ସମ
ଦୁନିଆରେ ଭକ୍ତ କାହିଁ ଦେଖ କେତେ ଜଣ ?
ପର ପାଇଁ ନିଜ ହାଡ଼ କିଏ ଦେବ କାଟି ?
ଆମ ଦେଶେ ନସ୍ତ ପୁଅଟି ଦଧୀଚି ନାଆଁଟି ।
ତାଙ୍କ ପ୍ରିୟ ନାତି ଆମେ ସେ ବୀରଙ୍କ ବରେ
ବଡ଼ ହେବୁ ଦୁନିଆରେ ଭଲ କାମ କରି ।

ଯେଉଁ ଦେଶ ଝିଅ ସୀତା, ସାବିତ୍ରୀ, ପଦ୍ମିନୀ
ଜନ୍ମ ଦେଲା ଲକ୍ଷ୍ମୀ ପରି ଝାନ୍ସୀ-ଦେଶ ରାଣୀ ।
ଦେଖ ଆଜ ଝଲମଲ ଅଛନ୍ତି ବଳ ଧରି
ଏଇ ଦେଶ ବୀରପୁଅ ସୁଭାଷଚନ୍ଦ୍ର ପରି !
ଯେଉଁ ଦେଶ ଗାନ୍ଧିବୁଢ଼ା ପାଦ ତଳେ ପଡ଼ି ।
ବଦଳ ବଦଳ ନୂଆ ମଥା ଦୁନିଆଟା ସାରି,
ସେଇ ଦେଶ ପୁଅ ଆମେ ନୂଆ ପାଠ ପଢ଼ି
ବଡ଼ ହେବୁ ଦୁନିଆରେ ଭଲ କାମ କରି ।



# ଆଦର୍ଶ ପିଲା

ପାଠ ପଢ଼ିବି, ପାଠ ପଢ଼ିବି,
ଭଲ ମନ୍ଦ ମୁଁ ବାରି ଶିଖିବି,
ଯେଉଁଟି ଭଲ ସେଇ ବାଟକୁ
ବଢ଼ାଇ ଦେବି ପାଦ,
ସାର ଟିକକ ତାକୁ ମୁଁ ନେବି
ପକାଇ ଦେବି ଖାଦ।

ନୂଆ ଜାଣିବି, ନୂଆ ଶିଖିବି,
ନୂଆ କଥା ମୁଁ ମନେ ରଖିବି,
ଯେଉଁ କାମଟି ଲାଗିବ ଭଲ
ଲଗାଇ ଦେବି ମନ
ନ ଦେବି ଛାଡ଼ି ଆସିଲେ ବାଧା
ଯାହା କହନ୍ତୁ ଜନ।

ବଡ଼ ହୋଇବି, ବଡ଼ ହୋଇବି,
ଭଲ ମଣିଷେ ଗଣା ହୋଇବି,
ଏତକ ଥାଉ ତମ ବଡ଼ିମା
ନ ଆସୁ ମୋର ତଳେ,
ସବୁ ଲୋକଙ୍କ ସାଙ୍ଗରେ ମୁହିଁ
ମିଶିବି ବଳେ ବଳେ।

ମଲେ ମରବ ମଲେ ମରବ
ଜୀବନ ଗଲେବେ ଡର ନ ଯିବ ।
ହୃଦ କଥାକୁ ପାଢବ ଘାଢ
କଟିବ ପଛେ ମଥା,
ସବୁ କାମର ଆଗେ ରଖିବ
ଦେଶ-ଜାତର କଥା ।

## ଚାଲଯିବା ଚାଟଶାଳୀ

ସକାଳ ହୋଇଲା ସୁନ୍ଦର ପାଟିଲା
କୁଆ ଉଡେ କାଆ ଗାଇ,
ଲଙ୍ଗଳ-ଜୁଆଳି- କାନ୍ଧେ ଗୀତ ଗାଇ
ବଳେ ଛୁଟେ ଚଷାଭାଇ ।

ଯେ ଯାହା ଧନ୍ଦାରେ ସବୁ ତ ଗଲେ
ଆମ୍ଭେ କିଆଁ ଥିବା ବସି ?
ଆସ ମୋ ଭଉଣୀ, ଆସ ମୋର ଭାଇ,
ଚାଟଶାଳୀ ଯିବା ହସି ।

ଭଲ ପାଠ ପଢି ଦେଶ-ଦୁନିଆର
କରିବା ମଙ୍ଗଳ କାମ,
ବାପ ମାଆ, ସାଇ- ଭାଇ ଖୁସି ହେବେ
ପ୍ରଭୁ କରିବେ କଲ୍ୟାଣ ।

## ଚାଟଶାଳୀ ବାହୁଡ଼ା

ଗୁରୁଜି ! ନମସ୍କାର,
ବେଳ ବୁଡ଼ିଲା, ପଢ଼ା ସରିଲା    ଚାଲିଲୁ ଏବେ ଘର ।
ଗୁରୁଜି ! ନମସ୍କାର ।

ଗାଁ ସେପଟୁ ଉଡ଼ିଆସନ୍ତି    ଚଢ଼େଇ ଦଳ ଦଳ ।
ଆକାଶ ଗୋଟା ବୁଲି ବୁଲି    ସୂର୍ଯ୍ୟ ଢଳେ ଜଳ୍ ।
ଗୁରୁଜି ! ନମସ୍କାର,
ବେଳ ବୁଡ଼ିଲା, ପଢ଼ା ସରିଲା    ଚାଲିଲୁ ଏବେ ଘର ।
ଗୁରୁଜି ! ନମସ୍କାର ।

କ୍ଷେତରୁ ଫେରେ ଚଷା ଭାଇ    କାନ୍ଧରେ ଲଙ୍ଗଳ,
ମନଫୁଲ୍ଲାଣିଆ ଗୀତଟି ତାର    କେଡ଼େ ସୁମଧୁର ।
ଗୁରୁଜି ! ନମସ୍କାର,
ବେଳ ବୁଡ଼ିଲା, ପଢ଼ା ସରିଲା    ଚାଲିଲୁ ଏବେ ଘର ।
ଗୁରୁଜି ! ନମସ୍କାର ।

ନାଚି ନାଚି ଯିବା ଆସ    ଭାଇ ଭଉଣୀ ମୋର,
ମାଆ ଥିବେ ବାଟ ଚାହିଁ    ନ କର ଉଚ୍ଛୁର ।
ଗୁରୁଜି ! ନମସ୍କାର
ବେଳ ବୁଡ଼ିଲା, ପଢ଼ା ସରିଲା    ଚାଲିଲୁ ଏବେ ଘର ।
ଗୁରୁଜି ! ନମସ୍କାର ।



## ଧର୍ମ ଗୀତିକା

( ଝଙ୍କା ପୂରଣିକା )

( ୧ )

ଖୋଲ ମୋ ଝଙ୍କା, ଚଢ଼ାଉଛଁ ସ
ଘୂରୁ ଘୂରୁ ଘୂରୁ ଯାଅ ରେ ଘୂର ।
ଘୂରୁ ଘୂରୁ ନାଚଭଙ୍ଗରୁ ତୋର
ଝେଡ଼େ ସରୁ ସୂତା ଝରୁ ବାହାର ।
ଧୋବ ଫର ଫର ବଳଣା ଗୋଟି
ପଡ଼ିମ୍ ନ ଯାଉଁ ଦେଉ ରେ ଛାଟି ।
ତୁ କାଟିଲେ ସୂତା ଅମର୍ଗା-ତନ୍ତ୍ରୀ
ବୁଣିଦେବ ମୋତେ ଚଦର ଧୋତି ।
ଟେକ୍ରି ଟେକ୍ରି ଝରୁ ଫରର ଭଲ
ସେପର ଝରବ ସଙ୍ଗେ ତୋହର ।

(୨)

ବାଆଁ ହାତେ ସୂତା ଛାଟିବ ମୁହଁ
ମୋଟ ସରୁ କେବେ ନ ହେବ ଛାହିଁ ।
ବସି ଅଙ୍ଗୁଳରେ ରଖି ଝଙ୍କା
ତଳକୁ ଟାଣିବ ବୁଢ଼ା ଅଙ୍ଗୁଳି ।
ମଝି ଅଙ୍ଗୁଳରେ ସେପର କର
କାଟିଯିବ ସୂତା ନ କର ଡେର ।

(ଖ)

ଡାହାଣ ହାତେର ବଡ଼ ସହଜ
ଜାଣିଥିଲେ ଭାଇ କାଟିବା ଶିକ୍ଷ ।
ବଣ୍ଡି ମହି ଟିଏ ଅମ୍ବିର ତଳ,
ରୂଢା ଟିଏ ଏକା ଯିବ ବାହାର ।
ଡାହାଁ ବାଆଁ ସୂତା ହୋଇବ ଏକା
ତନ୍ତୀ ଝରଣ୍ରର ନ ଥିବ ଦଙ୍କା ।

---

## ଗଣ୍ଠ-ପରୀକ୍ଷା

( ୦ )

ଅସ ମୋର ଭାଇ ଭଉଣୀ, ବସି ସୂତା କାଟିବା
ଏକ୍ କହିଲେ ସଲଖେ ସୁଖାସନେ ବସିବା ।
ଚଟି ଗୋଟି ଅଙ୍ଗୁଳି ପକାଇ ଦେବ୍ୟ ସାମନା ପାଖେ
ଦୋ ରେ ବଳଣା ନେଇ ଦେବା ଝିକଣି ନାକେ ।
ସର୍ ସର୍ ସୂତା ବାହାରୁଥିବ ଲାଗିବ ମଜା
ଝିକିଣିରେ ତାକୁ ଗୁଡ଼ାଇ ସବୁ କରିବା ସଜା ।
ତିନ୍ କହିଲେ କାଟିବା ସୂତା ପାଟି ନ କରି
ଗଣ୍ଠ ପରୀକ୍ଷାରେ ଦେଖିବା ଯିବ କିଏ ସେ ବଳି ?
ନୀରବେ ବଢ଼ିବ ଗଣ୍ଠ ଲମ୍ବେ ସୂତା ହୋଇବ ଭଲ
ମୋଟ ଧଣ୍ଡି ଅଣ୍ଠ ନ ହୋଇ ହେବ ସମ ସୁନ୍ଦର ।
ସମସ୍ତ ହୋଇଲେ ଏକ୍, ଦୋ, କହୁ ବନ୍ଦ କରି
ସଙ୍ଗେ ସଙ୍ଗେ ଗଣି ଗୁଡ଼ାଇ ଦେବା ଲଟେଇ ଧରି ।
ଗଣିସାରି ହୁଡ଼ା ହସାବ ସବୁ ଦେବାରେ ଯେବେ
ଦେଖିବା ସମାନ ପାଇଲ ବେଶୀ କା ସୂତା ତେବେ ?

# ଅଭ୍ୟାସ ଲଟେଇ

ଧର ତୁ ବଲଣା ପଢାଅ ପଟି
ଅଭ୍ୟାସରେ ଦୁତା ବସିବା ହାଟି ।
ବଲଣା ନଟେଇ ଝଲ୍ଲି ନାବେ
ଲାଟ ଏବେ ସୁତା ତୁ ମନ ସୁଖେ ।

ବଡ଼ ମଜା ଗପ କହୁ ସେ ଗୋଟେ
ଜେଣ୍ଡୁ ପାଟିକର ନାହିଁଟି ମୋଟେ ।
ଗପ ଶେଷେ ତୁଇ ଗୀତ ଗାଇବୁ
ପଛେ ତାଳେ ସବୁ ଅମେ ବୋଲିବୁ ।

ଶିଖିପିବା ଜେତେ ଡଗଡ଼ମାଳି
ଜେତେ ନୂଆ ନୂଆ ଗୀତ ପହଲି ।
ସୁତା ଲଟା ଲାମ ହେବ ଅସଲ
ତାର ସାଥେ ପାଠ ହେବ ହାସଲ ।

# ବଗିଚା କାମ

ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ୍ ।
ସବୁ କାମ ଆଗେ ଭାଇ ଦାନା ମୁଠି ସାର୍
ଆଉ ସବୁ ପଛ, ଆଗ ଦାନାର ଯୋଗାଡ଼ ।
ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ । ୧ ।
ଦାନା ମୁଠି କଲା ଖଣ୍ଡେ ଆଗ ଦରକାର
ତେବେ ଯାଇ ପାଠ ପଢ଼ା ଦୁନିଆର ହାଲ ।
ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ । ୨ ।
ମାଟି ଦେବ ଭାତ ଲୁଗା ମାଟି ତୋର ସାର
ମାଟି ଘର ମାଟି ଦ୍ୱାର ସଦା କାରବାର ।
ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ । ୩ ।
ମାଟି ପାଠ ନ ଜାଣେ ଯେ ପାଠ ବାଜି ତାର
ଆଖି ବୁଜି ଅଣ୍ଡାଳେ ସେ କପଟ ବେକାର ।
ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ । ୪ ।
ମାଟି ତାଡ଼ି ଗଢ଼ିବାରେ ସୁନାର ସଂସାର
ନିଜେ ଖଟି ନିଜେ ଭୁଞ୍ଜି ନିଜ ରୋଜଗାର ।
ଭାଇ, ସ୍କୁଲ୍‌ରେ ଏବେ ଚାଲ୍
ଛାଡ଼ି କୋଦାଳ ହାତେ ଧର ମାଟି ତାଡ଼ି ଚାଲ । ୫ ।
ନିଜେ ଖଟି ଭୁଞ୍ଜିବ ଯେ ନିଜ ରୋଜଗାର
ସ୍ୱବଶ ତା ନିଜ ହାତେ ଡର ନାହିଁ ତାର । ୬ ।

---

# ପ୍ରାକୃତିକ ସଙ୍ଗୀତ

୧

( ବାରମାସୀ ଗୀତ )

ବଇଶାଖ ଶେଷେ ଚାଡ଼ିଲି ମାଟି ଲୋ
ଭଅଣ୍ଟ ହୋଇଲା ସଙ୍ଗ
ଜ୍ୟେଷ୍ଠ ଶେଷେ ବିଆ ଲଗାଇ ଦେଲି ଲୋ
ଆଷାଢ଼େ ମାଇଲା ଗଙ୍ଗା ଲୋ ।
ଶ୍ରାବଣ ମାସରେ ଧାରବରଷା ଲୋ
ପଡର ଠଇଲା ଗୃହ
ଭାଦୂଅ ଅଶୀଣେ ଶାଗୁଆ ପତରେ
ମୋ ଗଛ ଦଶିଲା ଠୋସ ଲୋ ।

କାର୍ତ୍ତିକ ମାସରେ ନାଲି ଫୁଲଦଅ
ଫୁଲ ଫୁଟିଗଲା ଚେତେ
ଆଶା କରୁଥାଏ ଥିରକ୍ତ ଥିର ମୋ (ସୁନାଫୁଲ ଲୋ)
ଯେତେ ଦେଖୁଥାଏଁ ତେତେ—ସୁନାଫୁଲ ଲୋ ।

ଅଦ୍ୟ ମାର୍ଗଶିରେ ଶାଗୁଅ ପତ୍ରେ ଲୋ
ମୋ ଗଛ ଦଶିଲା ଭଲ
ପଉଷର ଶେଷେ ମଞ୍ଜିଲା ଗଛ ଲୋ
ଶୁଖି ପଡ଼ିଗଲା ଜଳା ଲୋ ।

ମାଘମାସେ କଖା ଫୁଟି ଝଉଁଳା ଲୋ
ଅଣିଲ ଗୁଙ୍ଗୁଡ଼ା ଭର
ଫଗୁଣେ ଶୁଖାଇ ମଞ୍ଜି ଛଡ଼ାଇଲ (ସୁନାଫୁଲ୍ ଲୋ)
କଖା ଖାଇ ପାଗେ ଧର — (ସୁନାଫୁଲ୍ ଲୋ) ।

ଚଇତେ କାଟିଲ୍ ଅରଟେ ସୂତା ଲୋ
ବୁଣାଇଲ ତନ୍ତୀ ହାତେ
ସେ ଖଦ ଚିକାରେ ସବୁ କି ହୋଇବ
ପାଟ ମଠା ଦେଲେ ଯେତେ ଲୋ ?

---

## ଶୀତଦିନେ

(୩)

ପାଉଁଶିଆ ଦିଶେ ବୁର ତୋଟା ଗାଁ
କୁହୁଡ଼ି ଅସ୍ତର ଘୋଟି
ସଞ୍ଜରୁ ସକାଳ କାକର ବରଷେ
ଠୋପା ଠୋପା ସବୁ ଗୋଟି ।

ଆକାଶରେ ନାହିଁ ବଉଦର ଚିହ୍ନ
ଗାଢ଼ ଅସିଲାଣି ମାଡ଼ି
ନାଚ ନାଚ ଧନ କେତେ କମିଲାଣି
ରାତ୍ର ଯାଉଅଛୁ ବଢ଼ି ।

ଗାଁ ବୁଢ଼ାବୁଢ଼ୀ କୁଂକୁର କାଂକୁର
ଚିଣ୍ଡ୍ରାରେ ପୁଅନ୍ତି ଖସି
ଶୀତକୁ କି ଆମେ ଡରିବାର ଚିଲା
ଆସ ଦଉଡ଼ିବା ଘସି ।

ଚଷାଭାଇ ଧାଏଁ ହସ ହସ ମୁହେଁ
କାଟିବ ପାଚିଲା ଧାନ
ଗୀତ ବରଷାରେ ଗାଇଛନ୍ତି ଯା ଲାଗି
ପାଇବ ଅନ୍ନ ତା ଧନ ।

ସୁନା ଚକଚକ ସୋରିଷ ଫୁଲରେ
ବିଲ୍ ଗୋଟି ଦିଶେ ତୋଷ
ମୁଗ ଚଣା ଚୁଇଁ ଆମ ଲାଗି ହେଲା
ଅଣ୍ଟି ଅଣ୍ଟି ହେବ ତୋଳା ।

ପତର ଝଡ଼ିଲା ଗଛ ବିଚରା ତ
ଖୁଣ୍ଟା ହୋଇ ହେଲା ଠିଆ
ଉତ୍ତର ପବନେ ଆମ ଦେହ ଗୋଡ଼ା
ଫାଟି କରି ଦେଲା ଫାଁ ।



# ପହିଲ ବସନ୍ତେ

( ୨ )

ଲାଗେ ଅତି ନୂଆ ରେ ଲାଗେ ଅତି ନୂଆ
ଛଟି ଛଟି ବହୁ ଅଛେ ଫୁଲ୍‌ ଫୁଲିଆ ବାଅ ରେ,
ମହୁଠାରୁ ବଳି ସୁଆଦଅ । ଘୋଷା ।

ଦକ୍ଷିଣ ଦଗରୁ ଆସି ଦେହ ଛୁଇଁ ଯାଏ
ମନକୁ ମୋର କେଉଁ ଦୂରଦେଶେ ଭିଡ଼ି ନିଏ ରେ । ୧ ।
ମହୁଠାରୁ ବଳି ସୁଆଦଅ ।

ଛୁଇଁ ଦେଲରୁ ନଇଲଲିଶି କେତେ ଆମ୍ବଗଛ
ବଉଁଳ-ଲିଶି ଗଛଲତା ହୋଇ ଅଗ ପଛ ରେ । ୨ ।
ମହୁଠାରୁ ବଳି ସୁଆଦଅ ।

ଫୁଟଇ କେତେ ଜାତି ଫୁଲ୍‌ ନୂଈ, ଯାଇ ମଞ୍ଜି
କୋଇଲି ଆସି ଗାଉଛି ଗୀତ କୁହୁ କୁହୁ ବୋଲି ରେ । ୩ ।
ମହୁଠାରୁ ବଳି ସୁଆଦଅ ।

ନାହିଁ ତ ଅଉ ବାଦୁଅ ଜାଡ଼ ଦୁନିଆଁ ହୁଏ ନୂଆ
ମନଫୁଲିଶିଆ ଗୀତ ଗାଇ ନାଚିବୁ ଆମେ ଛୁଆ ରେ । ୪ ।
ମହୁଠାରୁ ବଳି ସୁଆଦଅ ।



# ଗୀରାଧନେ

( ୩ )

ଝଅଁ ଲ ପଡରୁ                ନାଲ ବଦଳଣ
ଶାଗୁଆ ଦଣର ଧର,
ଚଉଠ ନ ଗଡ଼୍‌                ନିଅଁ ପର ମାଡ଼ି—
ଅସର ଠାଣିଅ ଶର ।

ସବାଳ ପହରୁ                ନ ଶଡ଼୍‌ ଅସର
ଦୁନିଆଁ ଗୋଠାର ଜାଲ,
ନିଅଁ ବୃଣ୍ଡି ଠାରୁ                ବଳି ଡହୁର ଲେ
ନଈ-ଦାଣ୍ଡ-ଘାଟ ବାଲି ।

ଦୁର ପହଡ଼ିଅ                ଡହୁର ପଡ଼ିନ
ବଣ୍ଟ ଯାଏ ନିଅଁ ଦଣା,
ମୃଗତୃଷ୍ଣା ଜଳ                ଦଳା ଭ୍ରମର ଲେ
ବାଟୋଇଙ୍କ ଦରେ ବଣା ।

ଦୁର ପହଡ଼ଅ                ଝଁଡ଼ ବତାସ ଲେ
ଘଡ଼ି ଦରେ ଝେଲମଲ,
ଉଦନ୍ତ ଉଜାଠା                କୁଅପଥର ଲେ
ବରଷେ ସରଗ ଫଳ ।

ହେଉପଛେ ଖରା-   ଧନ ନିଠୁର ଲୋ
ତା ବନା ପଗୃନ୍ଲା ହଏ ?
ବେତ, ଖିସ୍ରିବୋଲ ,   ଅମ୍ବ ପଣସ ଲୋ
ଭେଡେ଼ ମିଠା ଫଲ ଦଏ !

୯

ସଞ୍ଜ ଛନ ଛନ   ଢାଲ ସଭ ବହୁ
ଅଉ କେ ଦବ ତା ବନା,
ଝୁଲି ଯାଇ ମଞ୍ଜି   ମାଳତୀ ଫୁଟଇ
ଖରାଦିନ ଯୋଗୁଁ ସିନା !

କୁହୁ କୁହୁ ବୋଲି   କୋଇଲି ଗାଉଛି
ବସି ବସି ଗଛ ଡାଳେ,
ଖରାଦିନ ଗଲେ   ଏତେ ମିଠା ଗୀତ
ଅଉ କି ପାଇବୁ ଭଲେ ?

ଖରାଦିନ ଯୋଗୁଁ   ବଇଶା. ଅସର
ଢୁମ ଢୁମ ବାଜା ବାଇ,
ଚମ୍ପାଫୁଅ ଧରେ   ଲଙ୍ଗଳ ଜୁଆଳ
ଦୁନିଅର ପଡ଼ି ପାଇଁ ।

# ବର୍ଷାଦିନେ

( ୪ )

ବଉଦ ଉଠଲ କଲାହାଣ୍ଡିଆ ରେ
ଆସିଲ ବରଷାକାଲ
ବିଜୁଲି ଖେଲଲ ନଅଁ ଡୁଲା ଖେଲ
ଘଡ଼ଘଡି ଢଏ ତାଲ ।

ଟେଣ୍ଡା ଗଛ ସବୁ ଗଜର ଗଲଣି
ଭଅଁଳ ପତର ଦିଶେ
ପେଣ୍ଡୁଁ ଅଣ୍ଡେ ଗୁହିଁ ଷାଗୁଆ ଢଗର
ବାଲ୍ ଡୋଗା ଅଦବଦ ।

ବେଢେ ବେଗେ ଓଦେଗି ପାଣି ମାଝଆସେ
ନଈ ନାଲ ବଇ ଚୁର
ସାନ୍ତୁ କିଆଖରେ ପାଣି ଟଳେ ଟଳେ
ବେଙ୍ଗ ଢଏ ହୁଳହୁଳ ।

ଉଠ ଚଷା ଶୁଇ ମଠ କନ୍ଥୁ କିଅଁ
ବଳଦ କାମଟି ଚଲା
ତୁ ଦେଲେ ଖାଇବେ ଏ ଦେଶଟା ସାବ
ନ କରବେ ଦଣ୍ଡେ ହେଲା ।

---

# ଡଙ୍ଗାଖେଳ ଗୀତ

ନଈ ବଢିବ, ସୁଅ ଚାଲିବ
ଯିବା ଡଙ୍ଗା ଖେଳ ରେ
ଜଲଦ ଆସ ଚାଲି । ଘୋଷା ।

ଛଡ଼ି ଛଡ଼ି କାଗଜମୂଠା ଥିବୁ ଭାର ମାର
ଛାଟିଥିବୁ ପାଣି ପଛେ ଅଣ୍ଡୁଲଟା ଧର ରେ
ମୋଡ଼ ଦେଖି ମଙ୍ଗ ନେବୁ ଚାଳି ।
ଜଲଦ ଆସ ଚାଲି । ୧ ।

ସୁଅମୁହେଁ ଡଙ୍ଗା ମୋର ଯାଉଥିବ ଚାଲି,
ବଡ଼ ମଜଳିଆ ଗୀତ ଦେଉଥିବ ଗୁଡ଼ି ରେ
ବସି ବସି ଦେଉଥିବୁ ତାଳି ।
ଜଲଦ ଆସ ଚାଲି । ୨ ।

ଡରିବାର ଡିଲ ନୁହେଁ ଯିବୁ ଆମେ ତରି
ଅଣୁଥିଲେ ସୁନାମୁଣ୍ଡା ଦରିଆ ସେପାର ରେ
ବାପ ଅଜା ବୋଇତଟା ମେଲି ।
ଜଲଦ ଆସ ଚାଲି । ୩ ।

